=========

**(ପିଲାଏ ! ତୁମେ ସବୁ ଛନ୍ଦ ଭାବି ରାଗ ପଢୁଛ ଯେ ବୋର୍ଡ୍ / ୟୁନିଭାର୍ସିଟୀ ତୁମକୁ ରାଗ ବି ଠିକ୍ ସେ ପଢଉ ନାହାନ୍ତି ।}**

==========

ସଙ୍ଗୀତର ସ୍ବରର ବା ଧ୍ବନିର ପ୍ରକାରଭେଦ (ଯେଉଁ ସ୍ବର ବା ଧ୍ବନି ଶ୍ରୋତାର ଚିତ୍ତକୁ ରଞ୍ଜନ କରେ)— **24. A mode or tune in music.**

ଦ୍ର— ସାଧାରଣତଃ ଏହା **6** ଗୋଟି,

ଯଥା—

**ଭୈରବ, ମାଳବ, ଶ୍ରୀରାଗ, ହିନ୍ଦୋଳ, ବସନ୍ତ, ଦୀପକ** ବା **ମେଘ।**

ନାନା ମୁନି ଏହି **6**ଟି ରାଗର ଭିନ୍ନ ଭିନ୍ନ ନାମ ଦେଇଅଛନ୍ତି । ଭିନ୍ନ ଭିନ୍ନ ଋତୁରେ ଓ ଦିବା ରାତ୍ରିର ସମୟରେ ଓ ଉପଲକ୍ଷରେ ଭିନ୍ନ ଭିନ୍ନ ରାଗ ବ୍ୟବହୃତ ହୁଏ।

ବ୍ରହ୍ମାଙ୍କ ମତରେ ରାଗ **6** ପ୍ରକାର, ଯଥା—

**1।** ଶ୍ରୀ (ଶୀତଋତୁରେ ଗେୟ), **2।** ବସନ୍ତ (ବସନ୍ତରେ), **3।** ପଞ୍ଚମ (ଗ୍ରୀଷ୍ମରେ), **4।** ଭୈରବ (ଶରତ୍ରେ), **5।** ମେଘ (ବର୍ଷାରେ), **6।** ନାଟନାରାୟଣ (ହେମନ୍ତରେ।)

**ଭରତ ଓ ହନୁମାନଙ୍କ ମତରେ—**

**1।** ଭୈରବ, **2।** ମାଳବକୋଶ, **3।** ହିନ୍ଦୋଳ, **4।** ଦୀପକ, **5।** ଶ୍ରୀ, **6।** ମେଘ।

**ସୋମେଶ୍ବରଙ୍କ ମତରେ—**

**1।** ଭୈରବ, **2।** ମାଳବ, **3।** ଶ୍ରୀ, **4।** ହିନ୍ଦୋଳ **5।** ଦୀପକ, **6।** ମେଘ।

**ମତାନ୍ତରରେ—**

**1।** ବସନ୍ତ, **2।** ବୃହନ୍ନଟ, **3।** ମଲ୍ଲାର, **4।** ମାଳବ, **5।** ପ୍ରଦୀପ, **6।** କୌଶିକ।

**ମତାନ୍ତରେ—**

**1।** ଭୌରବ, **2।** ମାଳବ, **3।** ସାରଙ୍ଗ, **4।** ହିନ୍ଦୋଳ, **5।** ଦୀପକ, **6।** ମେଘ।

ପ୍ରତ୍ୟେକ ରାଗର **6**ଟି ଲେଖାଏଁ ରାଗିଣୀ ବା ପତ୍ନୀ କଳ୍ପିତ ହୋଇଅଛନ୍ତି । ରାଗିଣୀର ସଂଖ୍ୟା **36** ଗୋଟି ।

ପୁରାଣରେ ରାଗର ଉତ୍ପତ୍ତି ସମ୍ବନ୍ଧେ କଥିତ ଅଛି ଯେ— ଏକଦା ବ୍ରହ୍ମା ବିଷ୍ଣୁ ମହେଶ୍ବର କୈଳାସର ଶିଖରରେ ବସି ସୃଷ୍ଟି ବିଷୟରେ କଳ୍ପନା କଳ୍ପନା କରୁଥିବା ଅବସ୍ଥାରେ ସହସା ସେଠାରେ ଆଦ୍ୟାଶକ୍ତି ବା ପରାପ୍ରକୃତି ଆବିର୍ଭୂତା ହେଲେ । ଦେବତାରାଣ ତାଙ୍କ ରୂପଲାବଣ୍ୟରେ ଚଳିତ ଓ ମୁଗ୍ଧ ହୋଇ ରହିଲେ । ଦେବଦେବ ମହାଦେବ ତାଙ୍କୁ ପ୍ରସନ୍ନା କରିବାପାଇଁ ସ୍ତବ ଆରମ୍ଭ କଲେ । ଆଦ୍ୟାଶକ୍ତି ମହାଦେବଙ୍କ ଆଗ୍ରହାତିଶଯ୍ୟ ଦେଖି କହିଲେ, ଯେବେ ତୁମ୍ଭେ ମୋତେ ପାଇବାକୁ ଇଚ୍ଛା କର ତେବେ ଏ ଦେବତାମାନଙ୍କ ସମ୍ମୁଖରେ ତାଣ୍ଡବନୃତ୍ୟ ବା ଉଦ୍ଧତ ଭାବରେ ନୃତ୍ୟ କର । ପରାପ୍ରକୃତିଙ୍କ ମୁଖରୁ ଏହି ଆଦେଶ ଶ୍ରବଣ କରି ମହାଦେବ ଅତି ଉଦ୍ଧତାଭାବରେ ତାଣ୍ଡବନୃତ୍ୟ ଆରମ୍ଭ କଲେ ଓ ଗୀତ ଗାଇ ଏବଂ ତାଳେ ତାଳେ ପଦ ବିକ୍ଷେପ କରି ଓ ଡମରୁ ବଜାଇ ସ୍ବର୍ଗ ମର୍ତ୍ତ୍ୟ ପାତାଳକୁ କମ୍ପିତ କଲେ ସେ ।

ଏହି ତାଣ୍ଡବ ଅଭିନୟ କାଳରେ ମହାଦେବଙ୍କ ଜଟାଭାର ସ୍ଖଳିତ ହେଲା ଓ ଭଗବାନ ବିଷ୍ଣୁ ସେହି ନୃତ୍ୟଦର୍ଶନ ଓ ଗୀତବାଦ୍ୟ ଶୁଣି ଦ୍ରବୀଭୂତ ହେଲେ ଏବଂ କୈଳାସଶିଖର ସେ ଜଳରେ ପ୍ଲାବିତ ହେଲା । ଦେବୀଙ୍କ ଇଙ୍ଗିତରେ ବ୍ରହ୍ମା ଆପଣା କମଣ୍ଡଳୁ ମଧ୍ୟରେ ସେହି ନିର୍ମଳ ବାରିକୁ ପୂରାଇଲେ ।

ମହାଦେବ ନୃତ୍ୟାବସାନରେ **14** ଥର ଡମରୁଧ୍ୱନି କରିଥିଲେ ଓ ଉକ୍ତ ଧ୍ୱନିରୁ **'**ଅନୁସ୍ୱାର**'** ଓ **'**ବିସର୍ଗ**'** ସହିତ ଚତୁର୍ଦ୍ଦଶ **'**ସ୍ୱର— ବର୍ଣ୍ଣ**'**ର ଉତ୍ପନ୍ନ ହେଲା । ଉକ୍ତ ସ୍ୱରବର୍ଣ୍ଣମାନ **33**ଟି **'**ବ୍ୟଞ୍ଜନ**'** ସଙ୍ଗେ ଯୁକ୍ତ ହୋଇ ଭାଷା ସୃଷ୍ଟି କଲା। **'**ଅନୁସ୍ୱାର**'** ଓ **'**ବିସର୍ଗ**'** ସ୍ୱରବର୍ଣ୍ଣ ନ ହେଲେହେଁ ସ୍ୱରବର୍ଣ୍ଣ ମଧ୍ୟରେ ପରିଗଣିତ ହୁଅନ୍ତି ।

ଏହପରି ସଙ୍ଗୀତବିଦ୍ୟାର ସୃଷ୍ଟି ହେଲା ଓ ସରସ୍ୱତୀ ଏଥିରେ ଅଧିଷ୍ଠାତ୍ରୀଦେବୀ ହେଲେ ।

ପ୍ରଥମେ ସନକାଦି ଋଷିମାନେ ସେହି ସଙ୍ଗୀତବିଦ୍ୟାକୁ ପ୍ରାପ୍ତ ହେଲେ, ପରେ ମୁନିମାନେ ତପୋବଳରେ ଏହା ପ୍ରାପ୍ତ ହୋଇ ଜଗତରେ ପ୍ରକାଶ କଲେ। ପୁରାଣମତରେ ମହାଦେବ ସଂଙ୍ଗୀତବିଦ୍ୟାର ସ୍ରଷ୍ଟା ଓ ତାଙ୍କଠାରୁ ବ୍ରହ୍ମା ଉପଦେଶ ପାଇଁ ସଙ୍ଗୀତବିଦ୍ୟାର ଚର୍ଚ୍ଚା କଲେ ।

ବ୍ରହ୍ମା ପ୍ରଥମରେ **5** ଜଣ ଶିଷ୍ୟଙ୍କୁ ଏ ବିଦ୍ୟା ଶିଖାଇଲେ। ସେମାନଙ୍କ ନାମ

ଯଥା—

ଭାରତ, ନାରଦ, ରମ୍ଭା, ହୁହୁ ଓ ତୁମ୍ବୁର । ତତ୍ପରେ ଶିଷ୍ୟାନୁଶିଷ୍ୟକ୍ରମେ ସଙ୍ଗୀତବିଦ୍ୟା ପୃଥିବୀରେ ବ୍ୟାପିଥିବା କଥିତ ଅଛି । (ନାରଦପୁରାଣ, ଗନ୍ଧର୍ବରହସ୍ୟ, ସଙ୍ଗୀତରତ୍ନାକର ଆଦି ଗ୍ରନ୍ଥରେ ଏଥିସମ୍ବନ୍ଧେ ଅନ୍ୟାନ୍ୟ ଜ୍ଞାତବ୍ୟ ବିଷୟ ସନ୍ନିବେଶିତ ହୋଇଅଛି ।)

ପୂର୍ବେ ଭାରତବର୍ଷରେ ଶୁଦ୍ଧ ସ୍ୱର ଅବଲମ୍ବନପୂର୍ବକ ସଙ୍ଗୀତ ଗାନ ହେଉଥିଲା । ନବ୍ୟ ଆଚାର୍ଯ୍ୟମାନେ ସଙ୍ଗୀତ ବିଜ୍ଞାନର କୌଣସି ନୂତନ ବୀଜ ସୃଷ୍ଟି କରି ନାହାନ୍ତି । କେବଳ ପୂରାତନ ସଙ୍ଗୀତ ବିଦସାକୁ ନାନା ଅଳଙ୍କାରରେ ଭୂଷିତ କରିଅଛନ୍ତି ।

ବର୍ତ୍ତମାନ ଯେଉଁପରି ତାଳ, ଯମକ, ସ୍ବରର କମ୍ପନ, ମୂର୍ଚ୍ଛନା (ଏକ ସ୍ବରରୁ ସ୍ବରାନ୍ତରକୁ ଗତି), କୋମଳ, ତୀବ୍ର ପ୍ରଭୃତି ନାନା ଅଳଙ୍କାର ବିଭୂଷିତ ହୋଇ ଗୀତ ବୋଲା ଯାଉଅଛି, ପୂର୍ବରେ ଏପରି ନ ଥିଲା। ଶୁଦ୍ଧ ସ୍ବରକୁ ବିକୃତ କରି ନୂତନ ନୂତନ ଆକାରମାନ କରା ଯାଇଅଛି । ଇଉରୋପୀଯ ସଙ୍ଗୀତ ଓ ବୈଦିକ ସଙ୍ଗୀତ ଶୁଦ୍ଧ ସ୍ବର ଅବଲମ୍ବନପୂର୍ବକ ଗୀତ ହେଉଥିଲା ।

ଇଉରୋପୀୟମାନେ ସଙ୍ଗୀତର ଉନ୍ନତି ସାଧନ କରିଅଛନ୍ତି; କିନ୍ତୁ ଆମ ଦେଶରେ ବୈଦିକ ଗାନର ଅଉ ଉନ୍ନତି ହୋଇ ନାହିଁ । କେବଳ ଲୌକିକ ଗାନ ଉନ୍ନତି ଲାଭ କରିଅଛି । କେହି କେହି କହନ୍ତି ଯେ ବୈଦିକ **3** ସ୍ବରରୁ ଆଧୁନିକ **7** ସ୍ବର ବାହାରି ଅଛି । ଉଦାତ୍ତରୁ ନି, ଗ ଅନୁଦାତ୍ତରୁ ରି, ଧ; ସ୍ବରିତରୁ ସା, ମ, ପ ଉତ୍ପନ୍ନ । କେହି କେହି ଏହା ସ୍ବୀକାର କରନ୍ତି ନାହିଁ ।

ବେଦ ଗାନରେ **3**ଟି ମାତ୍ରସ୍ବର ବ୍ୟବହୃତ ହୁଏ।

ଯଥା—

ଉଦାତ୍ତ (ଉଚ୍ଚସ୍ବର), ଅନୁଦାତ୍ତ (ନିମ୍ନସ୍ବର) ଓ ସ୍ବରିତ (ମଧ୍ଯମ ସ୍ବର);

କିନ୍ତୁ ଲୌକିକ ଗାନରେ **7** ଗୋଟି ସ୍ବର

ଯଥା—**1.** ସା (ଷଡ଼୍ଜ, ମଯୂର ସ୍ବର); **2.** ରି (ଋଷଭ, ଷଣ୍ଢର ସ୍ବର); **3.** ଗା (ଗାନ୍ଧାର, ଛେଳିର); **4.** ମା (ମଧ୍ଯମ, କ୍ରୌଞ୍ଚର); **5.** ପା (ପଞ୍ଚମ, ବୀଣାର ଓ କୋକିଳର); **6.** ଧା (ଧୈବତ, ଘୋଡ଼ାର); **7.** ନି (ନିଷାଦ; ହାତୀର)।

ଏହି **7**ଟି ସ୍ବରର ଆପେକ୍ଷିକ କମ୍ପନ (vibration) ଯଥା— ଉଦାରା 'ସା' କୁ ଯଦି **'1'** ଧରାଯାଏ ତେବେ **'ସା' 24** କମ୍ପନ (Vibration) ହେଲା। ରି—**9/8 = 27**; ଗା—**5/4 = 30**; ମା—**4/3 = 32**; ପା—**3/2 = 36**; ଧା—**5/3 = 40**; ନି—**15/8 = 45** ।

ମୁଦାରା 'ସା' କୁ ଯଦି **2** ଧରାଯାଏ ତେବେ 'ସା' **2X 24 = 48** କମ୍ପନ ବା **(Vibration)** ହେଲା **।** ରି**—9/4 = 54;** ଗା**—5/2 = 6,** ମା**—8/3 = 64;** ପା**—3 = 72,** ଧା**—1/3 = 8,** ନି**—15/4 = 9 ।**

ତାରା 'ସା' କୁ ଯଦି **4** ଧରାଯାଏ ତେବେ 'ସା' **4x 24 = 96** କମ୍ପନ **(Vibration)** ହେଲା **।** ରି**—9/2 = 18;** ଗ୍ରା**—5 = 12** ମା**—16/3 = 128;** ପ**—6 = 144** ଧା**— 2/3 = 16;** ନି**—15/2 = 18 ।**

'ସା' ସ୍ବରର ଆପେକ୍ଷିକ କମ୍ପନ **(Vibration)** ପ୍ରତି ସେକଣ୍ଡରେ ଭିନ୍ନ ଭିନ୍ନ ଦେଶର ପଣ୍ଡିତମାନେ ଭିନ୍ନ ଭିନ୍ନ ସଂଖ୍ଯା କଳ୍ପନା କରିଅଛନ୍ତି;

ଯଥା —

ଇଂଲଣ୍ଡୀୟ — **256,** ଜର୍ମାନ — **264** ଓ ଫ୍ରାନ୍ସ — **26 ।**

ବର୍ତ୍ତମାନ ଆମ୍ଭେ ମାନେ ଯାହାକୁ 'ଉଦାରା'; 'ମୁଦାରା' ଓ 'ତାରା' କହୁଁ ତାହା ବୈଦିକ ଉଦାତ୍ତ, ଅନୁଦାତ୍ତ ଓ ସ୍ବରିତ ବୋଲି ଅନୁମାନ କରାଯାଏ **।**

ବୈଦିକ ସଙ୍ଗୀତରେ ଯେଉଁପରି **3** ଗୋଟି ସ୍ବର ଦେଖାଯାଏ, ଇଉରୋପୀଯ ସଙ୍ଗୀତରେ ସେହିପରି **3**ଟି ସ୍ବର **(Tone)** ଦେଖାଯାଏ**।**

ଯଥା—

ଉଦାତ୍ତ— **Major tone** (ଉଦାରା), ଅନୁଦାତ୍ତ— **Minor tone.** (ମୁଦାରା) ସ୍ବରିତ— **Semitoneor half tone.** [ତାରା] **।**

ଉକ୍ତ ସପ୍ତସ୍ୱରରୁ କ୍ରମେ **12** ଗୋଟି ବିକୃତସ୍ୱର ସୃଷ୍ଟି ହେଲା । ମନୁଷ୍ୟର ସ୍ୱରକୁ **Standard [ଆଦର୍ଶ]** ('ସା ଯାହା ମୟୂରସ୍ୱର) କରି ଧଇଲେ ଉକ୍ତ ସପ୍ତସ୍ୱରର ଆପେକ୍ଷିକ ଧ୍ୱନି **(Comparative modulation)** ସ୍ଥିର କରା ଯାଇ ପାରିବ ।

ଯେଉଁପରି ସିତାରରେ ବା ବଂଶୀରେ କରାଘାତ ବା ବାୟୁ ଆଘାତ ଦ୍ୱାରା ଶବ୍ଦ ଉତ୍ପନ୍ନ ହୁଏ ଓ ସିତାରର ପର୍ଦ୍ଦା ଏବଂ ବଂଶୀର ପାର୍ଶ୍ୱସ୍ଥ ଛିଦ୍ରମାନଙ୍କୁ ଭିନ୍ନ ଭିନ୍ନ ପ୍ରକାରେ ସଂଯତ କରି ଭିନ୍ନ ଭିନ୍ନ ସ୍ୱରମାନ ଶୁଣାଯାଏ, ଭାରତୀୟ ସଙ୍ଗୀତ ବିଜ୍ଞାନରେ ଲେଖାଅଛି ଯେ, ସେହିପରି ଆତ୍ମାର ପ୍ରଯତ୍ନ (ଉଚ୍ଚାରଣେଚ୍ଛା) ଦ୍ୱାରା ଦୈହିକ ଉଷ୍ଣତା ବା ତାପ (ତଡ଼ିତ) ବେଗ ପ୍ରାପ୍ତ ହୋଇ ସେହି ବେଗର ଉଦର-କନ୍ଦରସ୍ଥ ବାୟୁକୁ ଆଘାତ ବା ପ୍ରେରଣା କରିବା ଦ୍ୱାରା ଉଭୟଙ୍କ ସଂଘର୍ଷରେ ନାଦ ବା ଧ୍ୱନି ଉତ୍ପନ୍ନ ହୁଏ । ସେହି ଧ୍ୱନି ହୃଦୟବାଟେ ଗଳ ଗହରକୁ ଆସି ପୃଷ୍ଟତା ଲାଭ କରେ ଓ ବାଗ୍ୟନ୍ତ୍ରମାନଙ୍କ (ଜିହ୍ୱା, ଦନ୍ତ, ତାଲୁ ଇତ୍ୟାଦି) ଦ୍ୱାରା ଭିନ୍ନ ଭିନ୍ନ ପ୍ରକାରରେ ନିୟନ୍ତ୍ରିତ ହୋଇ ସେହି ପୃଷ୍ଟନାଦ ଭିନ୍ନ ଭିନ୍ନ ସ୍ୱର (ସାରିଗାମାପାଧାନି) ରେ ପରିଣତ ହୁଏ ।

ହୃଦୟ, କଣ୍ଠ ଓ ମୂର୍ଦ୍ଧା ଏହି ତିନି ସ୍ଥାନରୁ ଉତ୍ପନ୍ନ ତ୍ରିବିଧ କ୍ରମୋଚ୍ଚ ସ୍ୱରର ନାମ ମନ୍ଦ୍ର = (ଉଦାରା), ମଧ = (ମୁଦାରା) ଓ **2** ଗୁଣ ଓ ମନ୍ଦ୍ର ଅପେକ୍ଷା ତାରର ପରିମାଣ ବା ଓଜନ **3** ଗୁଣ ।

**7**ଟି ଶୁଦ୍ଧ ସ୍ୱରକୁ ବିକୃତକରି ଆଉ **12** ଟି ବିକୃତ ସ୍ୱର, ଏପରି ମୋଟରେ **19**ଟି ସ୍ୱରର ସୃଷ୍ଟି ହୋଇଅଛି । ଏହି 'ସ୍ୱର' ମାନଙ୍କୁ ଛନ୍ଦଃ ଓ ଅଳଙ୍କାରାଦିଦ୍ୱାରା ଭୂଷିତ କରି ଗୋଟିଏ ଗୋଟିଏ ଆକୃତି ଦାନ କଲେ ସେହି ସେହି ପ୍ରକାରମାନ 'ରାଗ' ହୁଏ ।

ଏହି ରାଗମାନ କର୍ଣ୍ଣରେ ପ୍ରବେଶ କଲେ ମନ ମୋହିତ ହୋଇ ଅନୁରାଗ ଜନ୍ମେ, ତେଣୁ ଏମାନଙ୍କର ନାମ 'ରାଗ' ହୋଇଅଛି ଏହି ସ୍ୱରମାନଙ୍କ ମଧ୍ୟରେ ପୁଣି **4**ଟି ପ୍ରକାର ବା ବିଭାଗ ଅଛି ।

ଯଥା—

**1.** ବାଦୀ (ଗୀତ ବୋଲିବା ସମଯରେ ଯେଉଁ ସ୍ବରର ପ୍ରାଚୁର୍ଯ୍ୟ ହେତୁକ ରରାଗର ବୋଧକ ହୁଏ), **2.** ସଂବାଦୀ (ପଞ୍ଚମ ସ୍ବରର ସମଶ୍ରୁତି), **3.** ବିବାଦୀ (ଗାନ୍ଧାର ଓ ନିଷାଦର, ଋଷଭ ଓ ଧୈବତର କ୍ରମ) ଓ **4.** ଅନୁବାଦୀ (ଋଷଭ, ଧୈବତ ଓ ଗାନ୍ଧାରର କ୍ରମ) **।** ପ୍ରଥମୋକ୍ତ **3** ସ୍ବରର ଲକ୍ଷଣକୁ ସ୍ୱର୍ଶ ନ କଲେ **4**ର୍ଥ ଅନୁବାଦୀ ସ୍ବର ହୁଏ **।**

ମୂର୍ଚ୍ଛନାଦିର ଆଶ୍ରଯଭୂତ ସ୍ବରସମୂହର ସୁବ୍ୟବସ୍ଥାର ନାମ **'ଗ୍ରାମ'** **।**

କ୍ରମାନ୍ବଯ ଆରୋହଣ ଅବରୋହଣ କ୍ରିଯା ସମ୍ବନ୍ଧେ ସ୍ବର ସମୂହର ନାମ ମୂର୍ଚ୍ଛନା **।**

ସ୍ବର, ବର୍ଣ୍ଣ ଓ ମୂର୍ଚ୍ଛନାଦି ଭୂଷିତ କରି ଯେଉଁ ଧ୍ବନି ବିଶେଷ ଉଚ୍ଚାରିତ ହୁଏ ସେହି ବିଶେଷ ବିଶେଷ ଧ୍ବନିର ନାମ ରାଗ **।**

ରାଗମାନ **3** ଶ୍ରେଣୀରେ ବିଭକ୍ତ**।**

ଯଥା—

ଓଡ଼ବ(**5** ସ୍ବରର ରାଗ), ଷାଡ଼ବ (**6** ସ୍ବର ବିଶିଷ୍ଟ) ଓ ସମ୍ପୂର୍ଣ୍ଣ (**7**ମ ସ୍ବର ବିଶିଷ୍ଟ) **।** ସୁତରାଂ **5** ସ୍ବରରୁ କମରେ 'ରାଗ' ହୁଏ ନାହିଁ **।** (ଲେଖ—ଶ୍ରୀ ମନୋମୋହନ ଘୋଷ **।**)

ହିନ୍ଦୁ ଶାସ୍ତ୍ରକାରମାନେ 'ରାଗ' କୁ ପୁରୁଷଜାତୀଯ ବୋଲି କଳ୍ପନା କରି ପ୍ରତ୍ଯେକ ରାଗର ଅନୁଗତା ଓ କୋମଳତା ବିଶିଷ୍ଟା **6**ଟି ଲେଖାଏଁ ଭାର୍ଯ୍ୟା ବା ରାଗିଣୀ କଳ୍ପନା କିର ଅଛନ୍ତି **।**

**ରାଗ 6 ଗୋଟି ଓ ରାଗିଣୀ 36 ଗୋଟି।**

ଯଥା—

ବ୍ରହ୍ମା ଙ୍କ ମତରେ, **1।** ଶ୍ରୀ ରାଗର ଭାର୍ଯ୍ୟା ମାଳଶ୍ରୀ, ତ୍ରିବେଣୀ ବା ତ୍ରିବଣୀ, ଗୌରୀ, କେଦାରୀ, ମଧୁମାଧବୀ ଓ ପାହାଡ଼ିକା (ମତାନ୍ତରରେ—ଗାନ୍ଧାରୀ, ଶୁଭଗା, ଗୌରୀ, କୌମାରୀ, ବେଲୋୟାରୀ, ବୈରାଗୀ) **2।** ବସନ୍ତ ରାଗର ଭାର୍ଯ୍ୟା—ଦେଶୀ, ଦେବଗିରୀ ବରାଟୀ, ତୋଡ଼ିକା, ଲଳିତା, ହିନ୍ଦୋଳୀ, (ମତାନ୍ତରରେ— ତୁଡ଼ୀ, ପଞ୍ଚମୀ, ଲଳିତା, ପଠମଞ୍ଜରୀ, ଗୁର୍ଜରୀ, ବିଭାଷା।) **3।** ଭୈରବର ଭାର୍ଯ୍ୟା—ଭୈରବୀ ଗୁର୍ଜରୀ, ରାମକିରୀ ଗୁଣକିରୀ, ବାଙ୍ଗାଳୀ, ସୈନ୍ଧବୀ, (ସମ୍ଭବତଃ ମାଳବ ଓ ଭୈରବ ଏକ) (ମତାନ୍ତରରେ—ଧାନସୀ, ମାଳସୀ, ରାମକିରୀ ସିନ୍ଧୁଡ଼ା, ଆଶାବରୀ, ଭୈରବୀ) **4।** ପଞ୍ଚମ ରାଗର ସ୍ତ୍ରୀ—ବିଭାଷୀ, ଭୂପାଳୀ, କର୍ଣ୍ଣାଟୀ, ବଡ଼, ହଂସିକା, ଭାଲକୀ ବା ମାଲବୀ, ପଟମଞ୍ଜରୀ (ସମ୍ଭବତଃ କର୍ଣ୍ଣାଟ ଓ ପଞ୍ଚମ ଏକ) (ମତାନ୍ତରରେ ଭୂପାଳୀ, ରାମକେଳୀ, ଗଡ଼ା କାମୋଦୀ, ନାଟିକା କଲ୍ଲାଣୀ) **5।** ମେଘର ରାଗିଣୀ—ମଲ୍ଲାରୀ, ସୌରଟୀ, ସାବେରୀ କୌଶିକ, ଗାନ୍ଧାରୀ, ହରଶୃଙ୍ଗାରୀ। **6।** ନଟନାରାୟଣର ରାଗିଣୀ—କାମୋଦୀ, କଲ୍ଲାଣୀ, ଆଭିରୀ, ନାଟିକା, ସାରଙ୍ଗୀ, ନଟ୍ଟହମ୍ବିରା।

ମତାନ୍ତରରେ **6**ଟି ରାଗର ନାମ ଭିନ୍ନ ଭିନ୍ନ ଓ **36** ରାଗିଣୀର ନାମ ମଧ୍ଯ ଭିନ୍ନ ଭିନ୍ନ ଥିବାର ଦେଖାୟାଏ । କିନ୍ତୁ ସମସ୍ତେ ଶ୍ରୀ ରାଗକୁ ପ୍ରଥମରାଗ ଆଖ୍ଯା ଦେଇଅଛନ୍ତି । ରାଗମାନେ ଯେଉଁପରି ଋତୁ ବିଶେଷରେ ଗେୟ, ରାଗିଣୀମାନେ ମଧ୍ଯ ଦିବସ ଓ ରାତ୍ରିର ଭିନ୍ନ ଭିନ୍ନ ସମୟରେ ଶୃଙ୍ଗାରାଦି ଭିନ୍ନ ରସ ସମ୍ପର୍କରେ ଗେୟ ।

**ଉଲ୍ଲିଖିତ 6 ରାଗ ଓ 36 ରାଗିଣୀ ଛଡ଼ା ଆଉ ଯେଉଁ ରାଗ ରାଗିଣୀମାନ ବ୍ୟବହୃତ ହୁଅନ୍ତି ସେମାନେ ଏମାନଙ୍କର ପୁତ୍ର (ଉପରାଗ) ଓ ପୁତ୍ରବଧୂ (ଉପରାଗିଣୀ) ରୂପରେ କଳ୍ପିତ ।**

ମୁସଲମାନ ବାଦସାହାମାନଙ୍କ ଦରବାରରେ ହିନ୍ଦ ସଙ୍ଗୀତ ଅନୁଶୀଳନ ହଇଥିବାରୁ ଆହୁରି କେତେଗୁଡ଼ିଏ ରାଗରାଗିଣୀର ସୃଷ୍ଟି ହୋଇଅଛି ।

ଦେଶର ନାମ ଅନୁସାରେ ମଧ୍ଯ ରାଗ ରାଗିଣୀର ସୃଷ୍ଟି ହୋଇଅଛି।

ଯଥା—

ବଙ୍ଗାଳୀ, ଗାନ୍ଧାରୀ, ଗୁର୍ଜରୀ, ସୈନ୍ଧବୀ, ଔଡ୍ରୀ, କଳିଙ୍ଗୀ, କାବେରୀ, ମାଳବ, ଗୌଡ଼ୀ, କାମୋଦୀ ଇତ୍ୟାଦି।

ସୁରଙ୍ଗୀର ରାଜା ସ୍ବର୍ଗୀଯ ଶ୍ରୀଚନ୍ଦ୍ରଚୂଡ଼ାମଣି ହରିଚନ୍ଦନଙ୍କ ରଚିତ ରଙ୍ଗୀତ ସର୍ବସ୍ବରେ ରାଗ ସମ୍ବନ୍ଧେ ଗୁଡ଼ିଏ ଆଲୋଚନା ଅଛି । ରାଗ ଓ ରାଗିଣୀମାନଙ୍କୁ ଭାଷାରେ ସାଧାରଣତଃ ରାଗ କୁହାଯାଏ । ଦେଶ ଭେଦରେ ସଙ୍ଗୀତର ରାଗାଦିର ସଂଖ୍ଯା ଏତେ ବଢ଼ି ଅଛି ଯେ, ତାହାର ସଂଖ୍ଯା ଓ ନାମୋଲ୍ଲେଖ ସହଜ ନୁହେଁ ।

ଉଦାହରଣ ସ୍ବରୂପ ସ୍ବର୍ଗୀଯ ଦାମୋଦର ପଟ୍ଟନାଯକଙ୍କ ସଂଗୃହୀତ ସଙ୍ଗୀତ ସାଗର ଓ ସଙ୍ଗୀତ ସର୍ବସାର ଆଦି ଗ୍ରନ୍ଥ ମାନଙ୍କରେ ଥିବା ସଙ୍ଗୀତମାନଙ୍କ ଆଦ୍ଯରେ ଦିଆ ଯାଇଥିବା ରାଗ ରାଗିଣୀମାନଙ୍କ ନାମରୁ ଏହା ଉପଲବ୍ଧ ହେବ ।

ଯଥା —

ଆଠଶା, ଆନନ୍ଦ, ଭୈରବୀ, ଆରବୀ, ଆଶାବରୀ, ଇମନ କଲ୍ଯାଣ, ଏରକାଲ କାମୋଦୀ, କନଡ଼ା, କରୁଣାଶ୍ରୀ, କଳଶା (ବାଣୀ), କଳହଂସ କେଦାର, କଲିଙ୍ଗଡ଼ା, କଲ୍ଯାଣୀ, କାଫି, କାମୋଦୀ, କାମ୍ବୋଜୀ, କୀର (ବାଣା), କୁମ୍ଭକାମୋଦୀ କେଦାର, କୈଶିକ, ଖମାର, ଖମାର, ଖମ୍ବାଜ, ଖରହର ପ୍ରିଯା, ଗୌରୀ ମନୋହାରୀ, ଘଣ୍ଟାରବ, ଚକ୍ରବାକ, ଚୋଖୀ, କଉହ୍ଲୁର ତୋଡ଼ି, ଜଙ୍ଗଲା, ଜଯନ୍ତ,. ଝିଂଝଟ, ଝଞ୍ଜୋଟି ବା ଝିଂଝଟ ଖମ୍ବାଜ, ଝିଂଝିଟ ତୋଡ଼ି, ତୋଡ଼ି ପରଜ, ଦେଶାକ୍ଷ, ଧନାଶ୍ରୀ, ନବରୋଜ, ନାଟକୁରଙ୍ଗୀ, ପରଜ ପାହାଡ଼ିଆ କେଦାର, ପୀଲୁ ପୁରବୀ, ପୂର୍ଣ୍ଣକାମୋଦୀ ପ୍ରାନ୍ତ, ବରାଡ଼ି, ବସନ୍ତ, ବସନ୍ତ ବରାଡ଼ି, ବାରୁଆଁ, ବାହାର, ବିଲାହୁରୀ, ବିହାଗ ବେଗଡ଼ା, ବେଲାଓର, ବେଲାବଳି, ବେହଗଡ଼, ବେହାଗ, ଭୈରବୀ, ଭୈରବୀ ଖମ୍ବାଜ ମନମୋହିନୀ, ମରୁଆ, ମଳଯ ମାରୁତ, ମାରୁଆ, ମାଳବୀ, ମାଳଶ୍ରୀ, ମୁଖାବରୀ, ମୁନିବର (ବାଣୀ), ମୋହନା, ରସକୁଲ୍ଯା ରସକୁଲ୍ଯା (ବାଣୀ), ରାଜବିଜେ, ରାମକେରୀ,, ରେଗୁପ୍ତ, ଲଳିତ

ଲଳିତାମୋଦୀ, ଶଙ୍କରାଭରଣ ଶୋକ କାମୋଦୀ, ଶୋକ କାମ୍ବୋଜୀ, ଶୋକ ବରାଡ଼ୀ, ଶ୍ରୀ, ସରସ୍ୱତୀ ମନୋହାରୀ ସାବେରୀ, ସିନ୍ଧୁଭୈରବୀ, ସୁରଟ, ସୁରଟମହ୍ଲାର, ସୁରାଟ ସେହେନା, ସୌରାଷ୍ଟ୍ର, ହଂସଧ୍ୱନି, ହରିକାମୋଦୀ, ହୁସେନ ।

ପଣ୍ଡିତ କୁଳମଣି ଦାଶଙ୍କ ଅଳଙ୍କାର ତରଙ୍ଗିଣୀରେ ପ୍ରଦତ୍ତ କେତେକ ରାଗର ଯତିପାତ ଓ ଉଦାହରଣ:—

**1।** ଭାଟିଆରୀ—ଏହାର ପ୍ରତ୍ୟେକ ପାଦ ଆଠ ଅକ୍ଷର ବିଶିଷ୍ଟ ଓ ଦୁଇ ପାଦରେ ଏକ ପଦ ହୁଏ । ପ୍ରତ୍ୟେକ ପାଦର ଚତୁର୍ଥ ଓ ଶେଷ ଅକ୍ଷର ଉପରେ ଯତି ପଡ଼େ । ଯଥା—ତ୍ରିଲୋଚନ' ପୁରହର' । ଶୂଳହସ୍ତ' ନାଗହାର'। —ଚିତ୍ରକାବ୍ୟ।

**2।** ଗୁର୍ଜ୍ଜରୀ—ଏହାର ପ୍ରତ୍ୟେକ ପାଦ ନଅ ଅକ୍ଷର— ବିଶିଷ୍ଟ ଓ ଦୁଇପାଦରେ ଏକ ପଦ ହୁଏ । ବୋଲିବା ଭଙ୍ଗୀରେ କେତେବେଳେ ତୃତୀଯ ଓ ଶେଷ ଅକ୍ଷର ଉପରେ, କେତେବେଳେ ବା ପଞ୍ଚମ ଓ ଶେଷ ଅକ୍ଷର ଉପରେ, ଯତିପାତ ହୁଏ। ଯଥା—କାଳଚକ୍ରର ଆବର୍ତ୍ତନେ, ଭୁଞ୍ଜନ୍ତି ସୁଖ ଦୁଃଖ ଜନେ । — ସାହିତ୍ୟ ପ୍ରସଙ୍ଗ।

**3।** ଚକ୍ରକେଳି—ଏହାର ପ୍ରତ୍ୟେକ ପାଦ ଏକାଦଶ ଅକ୍ଷରବିଶିଷ୍ଟ ଓ ଦୁଇପାଦରେ ଏକ ପଦ ହୁଏ। ପ୍ରତ୍ୟେକ ପାଦର ଷଷ୍ଠ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ । ଯଥା — ଆସଇ ଶିଶିର ଅନ୍ତେ, ଦିଶଇ ଧରଣୀ ଚାରୁ କେମନ୍ତେ।—ମଧୁସୂଦନ ବସନ୍ତ।

**4।** କେଦାର ଚକ୍ରକେଳି — ଏହା ମଧ୍ୟ ଚକ୍ରକେଳି ପରି ଏକାଦଶ ଅକ୍ଷରବିଶିଷ୍ଟ । ଯେତେବେଳେ ପଞ୍ଚମ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ, ସେତେବେଳେ ଏହା କେଦାର ଚକ୍ରକେଳି ନାମରେ ଅଭିହିତ ହୁଏ। ଯଥା — ନବବିଧାତା' ମଦନ ହୋଇଲା' ନବଯୌବନ' ସୃଷ୍ଟି ଭିଆଇଲା' । — ଭଞ୍ଜ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ।

**5।** ମାଳବ — ଚକ୍ରକେଳି ଓ କେଦାର ଚକ୍ରକେଳିକୁ ବେଳେବେଳେ ମାଳବ ନାମରେ ଅଭିହିତ କରାଯାଏ ।

**6।** ଭୂପାଳ — ଏହାର ପାଦ ଦ୍ବାଦଶ ଅକ୍ଷର ବିଶିଷ୍ଟ ଓ ଦୁଇପାଦରେ ଏକପଦ ହୁଏ । ପ୍ରତ୍ଯେକ ପାଦର ଅଷ୍ଟମ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ। ଯଥା—ଶ୍ରୀରାମ ମଧୁର ମୂର୍ତ୍ତି ଦେଖି ରାମା' ପଚାରନ୍ତି ସଖୀଙ୍କିଜ'ନକ ଜେମା' । କେବଣ ଦେଶ ନୃପତ' କାହା ସୂତ', ଦେଖିଲାବେଳୁଁ କାତର' ହୁଏ ଚିତ । — ବିଚିତ୍ର ରାମାୟଣ ।

**7।** ବିଭାସ କେଦାର—ଏହା ମଧ ଦ୍ବାଦଶ ଅକ୍ଷର— ବିଶିଷ୍ଟ ଓ ଏହାର ଦୁଇପାଦରେ ଏକ ପଦ ହୁଏ । ପ୍ରତ୍ଯେକ ପାଦର ଷଷ୍ଠ ଓ ଦ୍ବାଦଶ ଅକ୍ଷର ଉପରେ ଯତିପାତ ହୁଏ। ଯଥା — ଭୂଭଙ୍ଗରେ ଯାଙ୍କ' କମ୍ପିଲା ଭୂତଳ, ମକ୍ଷି ତଡ଼ିବାକୁ' ଏବେ ନାହିଁ ବଳ' । ଦ୍ବିସପ୍ତ ଭୁବନ' ମଣିଲେ ଯେ ଅଳ୍ପ,' ଆଶ୍ରିଲେ ସେ' ସପ୍ତଖଣ୍ଡର ତଳ୍ପ' । — ରାଧାନାଥ ନନ୍ଦିକେଶ୍ବରୀ।

**8।** କଳହଂସକେଦାର — ଏହାର ଚାରିପାଦରେ ଏକ ପଦ ହୁଏ। ପ୍ରତ୍ଯେକ ପାଦ ଦ୍ବାଦଶ ଅକ୍ଷରବିଶିଷ୍ଟ । ଦ୍ବିତୀୟ ଓ ଚତୁର୍ଥ ପାଦ ଶେଷରେ 'ୟେ' ବା 'ସେ' ଗୋଟିଏ ଅକ୍ଷର ଅଧିକା ଥାଏ । ପ୍ରତ୍ଯେକ ପାଦର ସପ୍ତମ ଓ ଶେଷ ଅକ୍ଷର ଉପରେ ଯତି ପଡ଼େ । ଯଥା—ମାଳବେ ହିମରତୁ' ଲୋକନ କରି', ଏକାଳେ ବିଦେଶତ' ଲୋକ ନ କରି' ଯେ । କରିବ ନାହିଁ କୁନ୍ଦେ' ରସିକ ବର', କାନ୍ତା ମୋ ଏହା ଭାବେ' ରସିକ ବର' ଯେ । — ଭଞ୍ଜ ପ୍ରେମସୁଧାନିଧି।

**9।** ଚିନ୍ତାଦେଶାକ୍ଷ — ଏହାର ଦୁଇ ପାଦରେ ଏକ ପଦ ହୁଏ। ପ୍ରତ୍ଯେକ ପାଦ କ୍ରୟୋଦଶ ଅକ୍ଷରବିଶିଷ୍ଟ ଏବଂ ପ୍ରତିପାଦର ଅଷ୍ଟମ ଓ ଶେଷ ଅକ୍ଷର ଉପରେ ଯତାପାତ ହୁଏ । ଯଥା— ବିଭାକର ବଂଶୀଶୁଣି,' ପୁଲକ ବହି, ବିଭାକର ଲଗ୍ନ ବୁଝି ବଶିଷ୍ଠେ କହି' । ବିନ୍ଯାସ କଲେ ସେ ବାଣୀ' ସନ୍ଧ୍ଯା— ବସାନେ' ବସାଇବା ମଣ୍ଡପରେ' କନ୍ୟା ସୁମନେ' । — ଭଞ୍ଜ ବୈଦେହୀଶବିଳାସ।

**10।** ଆଶାବରୀ — ପ୍ରତ୍ଯେକ ପାଦ ଚତୁର୍ଦ୍ଦଶ ଅକ୍ଷର ବିଶିଷ୍ଟ ଓ ଦୁଇପାଦରେ ଏକ ପାଦ ହୁଏ ପ୍ରତ୍ଯେକ ପାଦର ଅଷ୍ଟମ ଓ ଶେଷ ଅକ୍ଷର ଉପରେ ଯତି ପଡ଼େ। କେହି କେହି କହନ୍ତି ଏହାର ପ୍ରତ୍ଯେକ ପାଦର ତୃତୀୟା, ଷଷ୍ଠ, ଅଷ୍ଟମ ଓ ଶେଷାକ୍ଷର ଉପରେ, ଯତି ପଡ଼େ। ଯଥା—(କ) କେତେ' କଥା ସ୍ନେହମୟୀ' ଜନନୀ ତୁମ୍ଭର,' ବାଲ୍ଯେ ଶିଖା'ଇଲେ ପାଞ୍ଚି' ତୁମ୍ଭରି ମଙ୍ଗଳ'।—

**ସାହିତ୍ଯପାଠ। (ଖ) ଛନ୍ଦକ' ନିସ୍ତବ୍ଧ' ଚାହିଁ ଅଛି ଏକ ଧ୍ୟାନେ', ଦୁର୍ବଳ' ଶରୀର' କଥା ଶୁଭୁ ନାହିଁ କାନେ'। ସାହିତ୍ଯ ପାଠ।**

**11। ରାମକେରୀ — ପ୍ରତ୍ଯେକ ପାଦ ଷୋଡ଼ଷ ଅକ୍ଷର ବିଶିଷ୍ଟ, ଦୁଇ ପାଦରେ ଏକ ପଦ ହୁଏ ପ୍ରତ୍ଯେକ ପାଦର ନବମ ଓ ଶେଷ ଅକ୍ଷର ଉପରେ ଯତି ପଡ଼େ। ଯଥା — କଳା କଳେବର କହ୍ନାଇ' ସଙ୍ଗେ ରୋହିଣୀ ସୁତ' କରନ୍ତିମଥୁରା ବିଜଯେ' ଦାଣ୍ଡେ ଦେଖ ସଙ୍ଗାତ । କଳାକଳେବର ଚଉତିଶା ।**

**12। ଖଣ୍ଡକାମୋଦୀ—ଏହାର ପ୍ରତ୍ଯେକ ପାଦ ସପ୍ତଦଶ ଅକ୍ଷରବିଶିଷ୍ଟ ଏବଂ ଦୁଇ ପାଦରେ ଏକ ପଦ ହୁଏ। ପ୍ରତ୍ଯେକ ପାଦର ଷଷ୍ଠ, ଦ୍ବାଦଶ ଓ ଶେଷ ଅକ୍ଷର ଉପରେ ଯତି ପଡ଼େ । ଯଥା — ଭେଡ଼ା ଅଶ୍ବାଧାରୀ ବୃକ୍ଷହୀନ ଭୂମି ସମୁଦ୍ର ଦାଢ଼େ', ଦ୍ବୀପ ପ୍ରାଯେ ଯହିଁ କ୍ଷୁଦ୍ର ଜନପଦ' ଭାସେ ଆଷାଢ଼େ'। ରାଧାନାଥ ଉଷା।**

**13। କାଳୀ— ଏହାର ପ୍ରତ୍ଯେକ ପାଦ ସପ୍ତଦଶ ଅକ୍ଷର— ବିଶିଷ୍ଟ। ଦୁଇ ପାଦରେ ଏକ ପଦ ହୁଏ।. ପ୍ରତ୍ଯେକ ପାଦର ପଞ୍ଚମ, ଦଶମ ଓ ଶେଷ ଅକ୍ଷର ଉପରେ ଯତି ପଡ଼େ। ଯଥା—ମିତ ଅନ୍ତରେ' କୃଷ୍ଣ କାତରେ' କୁଞ୍ଜ ଭିତରେ ବସି', ମନୋଦୁଃଖରେ' ବୋଲନ୍ତି ଖରେ' ଉଦଯ ଖରେ ଶଶୀ'। ସାମନ୍ତ ସିଂହାର ବିଦଗ୍ଧଚିନ୍ତାମଣି।**

**14। କୁମ୍ଭକାମୋଦୀ—ଏହାର ପ୍ରତ୍ଯେକ ପାଦ ଅଷ୍ଟାଦଶ ଅକ୍ଷରବିଶିଷ୍ଟ। ଦୁଇପାଦରେ ଏକ ପଦ ହୁଏ ଓ ପ୍ରତ୍ଯେକ ପାଦର ଷଷ୍ଠ, ଦ୍ବାଦଶ, ପଞ୍ଚଦଶ ଓ ଶେଷ ଅକ୍ଷର ଉପରେ ଯତି ପଡ଼େ । ଯଥା — ଷବୋଲନ୍ତି ନନ୍ଦନେ' ଶୁଣଗୋ ଜନନୀ' ଅପୂର୍ବ ଚରିତ', ରାମକୃଷ୍ଣ ବେନି' ଦୂତ ପେଷିଛନ୍ତି କହିବେ' ଉଦନ୍ତ'। ଭକ୍ତଚରଣ ମଥୁରାମଙ୍ଗଳ। କେହି କେହି କହନ୍ତି ଏହି ବୃତ୍ତର ପ୍ରତ୍ଯେକ ପଦ ଚାରି ପାଦ ବିଶିଷ୍ଟ ।**

15 । ଦୀର୍ଘକାମୋଦୀ — ଏହାର ପ୍ରତ୍ଯେକ ପାଦ ଅଷ୍ଟାଦଶ ଅକ୍ଷରବିଶିଷ୍ଟ । ଦୁଇ ପାଦରେ ଏକ ପଦ ହୁଏ, ପ୍ରତ୍ଯେକ ପାଦର ଅଷ୍ଟମ, ଦ୍ବାଦଶ ଓ ଶେଷ ଅକ୍ଷର ଉପରେ ଯତି ପଡ଼େ । ଯଥା — ପ୍ରତ୍ଯକ୍ଷ ଦେବତା ବୋଲି' ମଣିବ ହେ' ଜନନୀ ଜନକେ' କରିବ ତାହାଙ୍କ ସେବା' ପ୍ରାଣପଣେ ବାଳିକା ବାଳକେ'। ମଧୁସୂଦନ ସାହିତ୍ଯପ୍ରସଙ୍ଗ।

**16।** ବଙ୍ଗଳାଶ୍ରୀ — ଏହାର ପ୍ରତ୍ୟେକ ପାଦ ବିଂଶ ଅକ୍ଷରବିଶିଷ୍ଟ ଓ ଦୁଇ ପାଦରେ ଏକ ପଦ ହୁଏ। ପ୍ରତ୍ୟେକ ପାଦର ଷଷ୍ଠ, ଦ୍ବାଦଶ ଓ ଶେଷ ଅକ୍ଷର ଉପରେ ଯତି ପଡ଼େ। ଯଥା—ବହୁ ଗୁଣାକର' ଉତ୍କଳ ଭାସ୍କର' ପ୍ରତାପୀ ନୃପପୁଙ୍ଗବ' ହେ ପ୍ରତାପରୁଦ୍ର' ବଢ଼ାଇଛ କ୍ଷୁଦ୍ର"—ଜାତିର ଗୁଣଗୌରବ"— ସାହିତ୍ୟପାଠ।

**17।** ମତିଆରୀ—ଏହାର ପ୍ରତ୍ୟେକ ପାଦ ଏକବିଂଶ ଅକ୍ଷରବିଶିଷ୍ଟ ଓ ଦୁଇ ପାଦରେ ଏକ ପଦ ହୁଏ। ପ୍ରତ୍ୟେକ ପାଦର ଷଷ୍ଠ, ଦ୍ବାଦଶ, ଅଷ୍ଟାଦଶ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ। ଯଥା — କେ ବୃଦ୍ଧ ଗଉଡ଼' ଗୋପମହାକୁଡ଼' ତିନି କୁଜ ତାର' ପିଠି ହେ' ପିନ୍ଧି କଳାଜଙ୍ଘି' ଦୋସଡ଼ା ଦୋରଙ୍ଗୀ' ଦୂରୁ ଚାହେଁ ମିଟି' ମିଟି ହେ'। ଚାଲେ ନଇଁ ନଇଁ ଖଣ୍ଡେଦୂର ଯାଇ' ଭିଡ଼ିଣ ପାକୁଆ' ପାଟି ହେ' କଉତୁକେ ବୋଲେ' ମୋ ସଙ୍ଗେ ଯୁଝିଲେ' ଭାଙ୍ଗିପକାଇବି ପିଠି ହେ' — କୃଷ୍ଣଲୀଳା।

**18।** ପୋଇ — ଏହାର ପ୍ରତ୍ୟେକ ପାଦ ଦ୍ବାବିଂଶ ଅକ୍ଷର — ବିଶିଷ୍ଟ ଓ ଦୁଇ ପାଦରେ ଏକ ପାଦ ହୁଏ । ପ୍ରତ୍ୟେକ ପାଦର ଷଷ୍ଠ, ଦ୍ବାଦଶ, ଅଷ୍ଟାଦଶ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ । ଯଥା—ଶ୍ରୀକୃଷ୍ଣ ଚରିତ' ଶୁଣି ପରୀକ୍ଷିତ' ଆନନ୍ଦେ ନୟନୁ' ବହେ ଜଳ', ପୁଲକ ଶରୀର, ଯୋଡ଼ି ବେନି କର' ପଡ଼ିଲା ମୁନିଙ୍କ' ପାଦତଳ। କୃଷ୍ଣଲୀଳା ।

**19।** କାମୋଦୀ — ଏହାର ପ୍ରତ୍ୟେକ ପଦରେ ଛଅଗୋଟି ପାଦ ଥାଏ। ପ୍ରଥମ ପାଦରେ **23**, ଦ୍ବିତୀଯ ପାଦରେ **24**, ତୃତୀଯ ପାଦରେ, **4**, ଚତୁର୍ଥ ଓ ପଞ୍ଚମ ପାଦରେ **9** ଲେଖାଏଁ ଓ ଷଷ୍ଠ ପାଦରେ **24** ଟି ଅକ୍ଷର ଥାଏ ନ। ଯତିପାତର କ୍ରମ ନିମ୍ନରେ ଦିଅଆଗଲା । ପ୍ରଥମ **7+7+3+6+** ଦ୍ବିତୀଯ, **7+7+3+6+1** ତୃତୀଯ**4,** ଚତୁର୍ଥ ଓ ପଞ୍ଚମ **7+2,** ଷଷ୍ଠ ଦ୍ବିତୀଯ ପଦର ଅନ୍ୟରୂପ । ଷଷ୍ଠ ପାଦ ଉତ୍ତାରୁ ପୁନରପି ତୃଟତୀୟ ପାଦର ଆବୃତ୍ତି ହୁଏ । ଯଥା —**1** ସୁଧୀରେ ଘେନ ଧୀରେ' ଛାନ୍ଦ କଳା ନିଧିରେ' ତୁଳସୁ' ସ୍ବାଦୁ' ସୁଧାଦାଯୀ', **2।** ସ୍ବର୍ଣ୍ଣେ ଆହ୍ଲାଦକର ଜୀବ ତାପ ନିକର,' ଆନନ୍ଦା'ବ୍ଧ ବର୍ଦ୍ଧନ ହୋଇ' ହେ'। **3।** ଧୀରଜନେ', **4।** ହୃଦକୁମୁଦ ମୁଦ' ହେବ, **5।** ତମସକୁଳ କ୍ଷଯ' ଯିବ,' **6।** ରାଧାକୃଷ୍ଣ ନୂତନ' ମିଳନ ସୁଯତନ', ଶ୍ରବଣେ ସୁଗତି ଲଭିବ' ହେ' ଧୀରଜନେ। ସାମନ୍ତସିଂହାର ବିଦଗ୍ଧ— ଚିନ୍ତାମଣି।

**20।** ଖଣ୍ଡକାମୋଦୀ — ଏହା ଠିକ୍ କାମୋଦୀ ବୃତ୍ତର ଅନୁରୂପ । କାମୋଦୀ ରାଗର ଦ୍ବିତୀୟ ପାଦର ଓ ଷଷ୍ଠ ପାଦର ଶେଷ ଅକ୍ଷରଦ୍ବୟ ଏବଂ ତୃତୀୟ ପାଦଟି ଏଥିରେ ନ ଥାଏ ଶେଷ ପାଦରେ **'ହେ'** ନ ଥାଏ। ତେଣୁ ଏହା ପଞ୍ଚପାଦ ବିଶିଷ୍ଟ । ଯଥା—**1**ଚାହୁଁ ଚାହୁଁ ସୁନୀଳ' ସମୁଦ୍ରେ ତୋ ସଲିଳ' ଢ଼ାଳି' ତୁ ଦେଲୁ ମହାପୂରେ,' **2।** ଅନନ୍ତ ସିନ୍ଧୁ ସଙ୍ଗେ' ମିଶି ଗଲୁକି ରଙ୍ଗେ,' ସକଳ' ଭେଦ ଫିଙ୍ଗି ଦୂରେ,' **3।** ଲହରୀ ହୀରକର' **4।** ତୋ କଣ୍ଠେ ତହୁଁ ପାରାବାର,' **5** ଲମ୍ବାଇ ମହାନନ୍ଦେ' ଗାଏ ଗାୟତ୍ରୀ ଛନ୍ଦେ', ତୋ ସଙ୍ଗେ' ସଙ୍ଗୀତ ଉଦାର'। ମଧୁସୂଦନ ନଦୀପ୍ରତି।

**21।** ମାଳିନୀ — ପ୍ରାଚୀନ ଓଡ଼ିଆ ଛାନ୍ଦ ପୁସ୍ତକମାନଙ୍କରେ ଏଭଳି ବୃତ୍ତ ଦେଖାୟାଏ ନାହିଁ, ଏହାର ପ୍ରତ୍ତେକ ପଦ ଚାରି ପାଦବିଶିଷ୍ଟ।. ପ୍ରଥମ ପାଦରେ ଦଶଗୋଟି, ଦ୍ବିତୀୟ ପାଦରେ ଷୋଳଗୋଟି, ତୃତୀୟ ଓ ଚତୁର୍ଥ ପାଦରେ ଚଉଦ ଗୋଟି ଲେଖାଏଁ ଅକ୍ଷର ଥାଏ। ୟତିପାତର ନିଯମ ଯଥା—ପ୍ରଥମ ପାଦ—**4+6**, ଦ୍ବିତୀୟପାଦ—**8+8**, ତୃତୀୟ ଓ ଚତୁର୍ଥ ପାଦ **8+6।**.—ୟଥା, **1** । ଆସ ନାଥ' ଅଗତିର ଗତି,' **2।** ତୁମ୍ଭ ବିନା ଏ ସଂସାରେ' ମରଇଁ ମୁଁ ହାହାକାରେ',**3।** ତାର ମୋତେ ମହାପ୍ରଭୁ' ଦେଇଣ ସୁମତି,' **4।** ଅନନ୍ତ ଦୟା ତୁମ୍ଭର' ଅନନ୍ତ ଶକତି'। ମଧୁସୂଦନ ଜୀବନଚିନ୍ତା

**22** ରସକୁଲ୍ଲା—ଏହାର ପ୍ରତ୍ତେକ ପଦ ଛଅ ପାଦ ବିଶିଷ୍ଟ। ପ୍ରଥମ ଦ୍ବିତୀୟ ଓ ତୃତୀୟ ପାଦରେ **11** ଗୋଟି ଲେଖାଏଁ ଅକ୍ଷର ଥାଏ ଏବଂ ତହିଁରେ ଷଷ୍ଠ ଓ ଶେଷ ଅକ୍ଷର ଉପରେ ୟତି ପଡ଼େ। ଚତୁର୍ଥ ପାଦ ବାର ଅକ୍ଷର ବିଶିଷ୍ଟ, ତହିଁରେ ଷଷ୍ଠ, ଏକାଦଶ ଓ ଶେଷ ଅକ୍ଷର ଉପରେ ୟତିପାତ ହୁଏ। ପଞ୍ଚମ ପାଦ ନଅ ଅକ୍ଷରବିଶିଷ୍ଟ ତହିଁରେ ଷଷ୍ଠ, ଅଷ୍ଟମ ଓ ଶେଷ ଅକ୍ଷର ଉପରେ ୟତିପାତ ହୁଏ ଏବଂ ଷଷ୍ଠ ପାଦ **21** ଅକ୍ଷର ବିଶିଷ୍ଟ, ତହିଁରେ ଷଷ୍ଠ, ଦ୍ବାଦଶ, ଅଷ୍ଟାଦଶ, ବିଂଶ ଓ ଶେଷ ଅକ୍ଷର ଉପରେ ୟତିପାତ ହୁଏ। **1।** ନୀରବନ୍ତେ ରାମ' ଦେବ ବିମାନ' **2।** ଇଚ୍ଛା ଜାଣି ବେଗେ' ଉଲ୍କା ସମାନ' **3** । ତାରାପଥୁ ଖସେ' ଅବନୀ ତଳ' **4।** ଅନମ୍ବର ଦେଶ ଦିଶେ ଉଜ୍ଜ୍ବଳ ସେ **5।** ଅନାଉଲେ ବିସ୍ମ'ୟରେ' ୟେ' **6** । ଆନନ୍ଦେ ମଗନ' ଅସୋଧ୍ୟାନିବାସୀ' ଭରତଙ୍କ ଅନୁ'ଚରେ' ୟେ'। ମଧୁସୂଦନ ଅୟୋଧ୍ୟା ପ୍ରତ୍ତ୍ୟାଗମନ।

**23 ।** ଆଷାଢ଼ଶୁକ୍ଳ **(**ବାଣୀ**)**—ଏହାର ପ୍ରତ୍ୟେକ ପଦ ଛଅ ପାଦବିଶିଷ୍ଟ। ପ୍ରଥମ, ଦ୍ବିତୀୟ, ତୃତୀୟ, ଚତୁର୍ଥ ଓ ଷଷ୍ଠ ପାଦରେ ଏଗାର ଗୋଟି ଲେଖାଏଁ ଅକ୍ଷର ଥାଏ ଓ ପ୍ରତି ପାଦର ପଞ୍ଚମ ଓ ଶେଷ ଅକ୍ଷର ଉପରେ ଯତି ପଡ଼େ। ପଞ୍ଚମ ପାଦରେ ଛଅ ଗୋଟି ଅକ୍ଷର ଥାଏ ଏବଂ ତାହାର କେବଳ ଶେଷ ଅକ୍ଷର ଉପରେ ଯତି ପଡ଼େ। ଯଥା—ରସିକମାନେ' ଶୁଣ ଦେଇ ମନ' ରମଣୀ ମଣି' ଦିନୁ ଦିନୁ କ୍ଷୀଣ' ରତି ପତି ଛାତି କରତିକାରରେ' ରସହାସ ଗ୍ରା'ସ ବେଶ ବାସରେ', ରହିତ ଆଦର' ରସଳସା ସା'ରେ ନିଶି ବାସର'। ସାମନ୍ତସିଂହାର ବିଦଗ୍ଧ ଚିନ୍ତାମଣି।

**24।** ଶଙ୍କରାଭରଣ—ଏହାର ପ୍ରତ୍ୟେକ ପଦ ଚାରି ପାଦବିଶିଷ୍ଟ। ପ୍ରଥମ ଦ୍ବିତୀୟ ଓ ଚତୁର୍ଥ ପାଦରେ **14** ଗୋଟି ଲେଖାଏଁ ଅକ୍ଷର ଥାଏ ଓ ପ୍ରତ୍ୟେକ ପାଦର ଅଷ୍ଟମ ଏକାଦଶ, ଦ୍ବାଦଶ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ। ତୃତୀୟ ପାଦଟି ଆଠ ଅକ୍ଷରବିଶିଷ୍ଟ ଓ ଏହାର ଦ୍ବିତୀୟ, ଷଷ୍ଠ ଓ ଶେଷ ଅକ୍ଷର ଉପରେ ଯତି ପଡ଼େ। ଯଥା—ଦାଣ୍ଡରେ ଶୁଭିଲା ରାମ' କୃଷ୍ଣ ବେ'ନି' ଭାଇ' ଅକ୍ରୂର ଆସିଛି ତାଙ୍କୁ' ଘେନି ଯି'ବା' ପାଇଁ' ରାଜା' ପରଜା ସ'ହିତେ' ସଜ ହୋଇଥାଅ କାଲି' ଚଳିବା' ପ୍ରଭାତେ'। ଭକ୍ତଚରଣ ମଥୁରାମଙ୍ଗଳ।

**25।** ଚୋଖି—ଏହାର ପ୍ରତ୍ୟେକ ପଦ ଚାରିପାଦବିଶିଷ୍ଟ; ପ୍ରଥମ ଓ ଦ୍ବିତୀୟ ପାଦରେ **29** ଗୋଟି ଲେଖାଏଁ, ତୃତୀୟ ପାଦରେ **9** ଗୋଟି ଓ ଚତୁର୍ଥ ପାଦରେ **13** ଗୋଟି ଅକ୍ଷରର ଥାଏ। ଯତିପାତର କ୍ରମ ନିମ୍ନରେ ପ୍ରଦର୍ଶିତ ହେଲା। ପ୍ରଥମ ଓ ଦ୍ବିତୀୟ**6+2+6+2+8+5;**ତୃତୀୟ**6+3;** ଚତୁର୍ଥ**6+2+5।** ଯଥା— **1।** ବିତଳକୁ ଆଲି'ଙ୍ଗନ' କରି ଜାହ୍ନବୀ ଶୋ'ଭନ' ହରେ ସୁରବର ତାପ' ଚାରୁ ଧାରା ସେ' **2।** ବହେ ମକର କେ'ତନ' ଉଚ୍ଛନ୍ନ ରରତି ସ'ମାନ' ପୂରତି ହୋଇଛି ପୁଣି'ଅଶେଷ ରସେ ' **3।** ବିନ୍ଦୁ ହୈମବତୀ' ପଦରେ' **4।** ବିଷକଣ୍ଠ ତୋଷ' ଦାନୀ' ବେନି ମତରେ'। ଭଞ୍ଜ ବୈଦେହୀବିଳାସ।

**26।** ଘଣ୍ଟାରବ—ଏହାର ପ୍ରତ୍ୟେକ ପଦରେ ତିନି ଗୋଟି ପାଦ ଥାଏ। ପ୍ରଥମ ଓ ଦ୍ବିତୀୟ ପାଦରେ ଆଠ ଗୋଟି ଲେଖାଏଁ ଅକ୍ଷର ଓ ତୃତୀୟ ପାଦରେ କୋଡ଼ିଏ ଗୋଟି ଅକ୍ଷର ଥାଏ। ପ୍ରଥମ ଓ ଦ୍ବିତୀୟରେ କେବଳ ଶେଷ ଅକ୍ଷର ଉପରେ ଓ ତୃତୀୟ ପାଦରେ ଷଷ୍ଠ, ଦ୍ବାଦଶ ଓ

ଶେଷ ଅକ୍ଷର ଉପରେ ଯତି ପଡ଼େ। ଯଥା— **1**। ମାଣବକ ଖେଳା ପରେ **2**। ମାତି ସେ ଶସ୍ତ୍ର ଶାସ୍ତ୍ରରେ' **3**। ମନ୍ଥ ଶାସ୍ତ୍ର ଅଚ୍ଛି' ମାନସକୁ ଚୋଧି' ମହାସେନ ଦର୍ପ ହରେ'— ଗୋଲୋକି ଇନ୍ଦୁରେଖା।

**27**। ଜୟନ୍ତ—ଏହାର ପ୍ରତ୍ୟେକ ପଦ ତିନିପାଦବିଶିଷ୍ଟ। ପ୍ରଥମ ଓ ଦ୍ବିତୀୟ ପାଦରେ ଚଉଦ ଗୋଟି ଲେଖାଏଁ ଅକ୍ଷର ଥାଏ ଏବଂ ସେ ଦୁଇ ପାଦରେ ଅଷ୍ଟମ, ଦ୍ବାଦଶ ଓ ଶେଷ ଅକ୍ଷର ଉପରେ ଯତି ପଡ଼େ। ତୃତୀୟ ପାଦଜ ଛଅଗୋଟି ଅକ୍ଷରବିଶିଷ୍ଟ, ତାହାର ଦ୍ବିତୀୟ, ପଞ୍ଚମ ଓ ଶେଷ ଅକ୍ଷର ଉପରେ ଯତି ପଡ଼େ। ଯଥା—**1**। ଧୀରେ ଘେନ କାନନରେ' କୃଷ୍ଣ ବିଳମ୍ବିତ' **2**। ବାତ୍ସଲ୍ଯ ମମତା ଘେନି' ଭାଳୁଛନ୍ତି' ମାତ' **3**। କଳା' ମାଣିକରେ'। ସାମନ୍ତସିଂହାର ବିଦଗ୍ଧଚିନ୍ତାମଣି**0**।

**28** । ଲଳିତ କାମୋଦୀ—ଏହାର ପ୍ରତ୍ୟେକ ପଦରେ ଚାରି ଗୋଟି ପାଦ ଥାଏ। ଅକ୍ଷର ସଂଖ୍ୟା ଓ ଯତିପାତର କ୍ରମ ନିମ୍ନରେ ପ୍ରଦର୍ଶିତ ହେଲା। ପ୍ରଥମ, ଦ୍ବିତୀୟ ଓ ଚତୁର୍ଥ ପାଦ— **2+2+2+2+2+3 = 15** ତୃତୀୟ ପାଦ—**3+5+2+2+3 = 15** ଯଥା—ଧୀରେ'ରାଧା' କର' ଧରି' କହୁ'ଛନ୍ତି' ଦୂତିକି' ଜୀବ'ନ ନେ'ବାକୁ' ଲଗା'ଇଛୁ' ପାପ' ପ୍ରୀତିକି' ଦୂତିଗୋ' ପ୍ରାଣବନ୍ଧୁରେ' କହ'ଯାଇ ଏତିକି' ଦୀକ୍ଷା' କରି'ଛନ୍ତି' ପରା' ନାରୀମରା' ରୀତିକି। ଅଭିମନ୍ୟୁ ବିଦଗ୍ଧଚିନ୍ତାମଣି।

**29**। ପାହାଡ଼ିଆ କେଦାର—ଏହାର ପାଞ୍ଚ ପାଦରେ ଏକ ପଦ ହୁଏ। ପ୍ରଥମ, ଦ୍ବିତୀୟ ଓ ପଞ୍ଚମ ପାଦ **35** ଅକ୍ଷର— ବିଶିଷ୍ଟ। **3**ୟ **4**ର୍ଥ ପାଦରେ ବାର ଗୋଟି ଲେଖାଏଁ ଅକ୍ଷର ଥାଏ। ଏହା ପଠ ହେଲାବେଳେ ପ୍ରତ୍ୟେକ ପାଦର ଶେଷରେ ହେ, ଗୋ ବା ଯେ ମଧ୍ଯରୁ କୌଣସି ଗୋଟିଏ ଲାଗେ । ପ୍ରଥମ, ଦ୍ବିତୀୟ ଓ **5**ମ ପାଦର ଦଶମ, ବିଂଶ, ତ୍ରିଂଶ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ। **3**ୟ ଓ **4**ର୍ଥ ପାଦ ଶେଷରେ ଯତି ପଡ଼େ। ପ୍ରଥମ ପାଦର ଶେଷ ଅକ୍ଷର ଯାହା, ଦ୍ବିତୀୟ ପାଦର ଶେଷ ଅକ୍ଷର ତାହା ହୁଏ ଓ ତୃତୀୟ, ଚତୁର୍ଥ ପାଦର ଅକ୍ଷର ଯାହା ହୁଏ, ପଞ୍ଚମ ପାଦର ଶେଷ ଅକ୍ଷର ତାହା ହୁଏ। ଯଥା—**1** ଘେନ ବିଦୁଷ ଅପୂର୍ବରସ' ରଣ ଉଦୋଗେ ଅଙ୍ଗ ନରେଶ' ଢ଼େଙ୍ଗୁରା ବାଜେ ଦେଶ ବିଦେଶ' ସଇନ ସାଜେ' ଯେ, **2**। ଆସେ କେ ମଲ୍ଲ ଧରିଣ ଭଲ୍ଲ' କୃପାଣ ପାଣି ଶୋଭା ଅତୁଲ' ଅଙ୍ଗେ ଫଳକ ଦୋଳେ ବର୍ତ୍ତୁଳ' ମଦେ ଗରଜେ;

ଯେ, **3।** ଦଉପେ କେ ଉନ୍ନତ ତ୍ରିଶୂଳ ଧରେ' ଯେ, **4।** ଖରଶାଣ ତରବାରୀ କାହା କରେ' ଯେ **5।** କେ ବାଣାସନ ଧରି ଶୋଭନ' ଖଞ୍ଜି ତୁଣୀରେ ଶର ଯତନ' ସାଞ୍ଜୁ ବର୍ମ୍ମରେ କେବା ଭୂଷଣ' ମାତି ମତରେ' ଯେ ଗୋଲୋକ ଇନ୍ଦୁରେଖା।

**30।** କଉଶିକ—ଏହାର ପ୍ରତ୍ୟେକ ପଦରେ ପାଞ୍ଚଗୋଟି ପାଦ ଥାଏ। ପ୍ରଥମ, ଦ୍ବିତୀଯ ଓ ପଞ୍ଚମ ପାଦ **21** ଅକ୍ଷର ବିଶିଷ୍ଟ। ତୃତୀଯ ପାଦରେ ପାଞ୍ଚ ଓ ଚତୁର୍ଥ ପାଦରେ **9**ଟି ଅକ୍ଷର ଥାଏ। ଯତିପାତର କ୍ରମ ନିମ୍ନରେ ଦିଆଗଲା। ପ୍ରଥମ, ଦ୍ବିତୀଯ ଓ ପଞ୍ଚମ ପାଦରେ — **3+3+3+3+3+3+3; 3**ଯ ରେ — **2+3;**ଚତୁର୍ଥରେ — **3+3+3** ଯଥା—**1।** ମନ୍ତ୍ରି ମୁ' ଖୁ ଶୁଣି' କୋପେ ବି ଶପାଣି' ପୁଷ୍କକ' ଯାନେ ବି' ଜେ କଲା' **2।** ଧନୁଶ'ର ଧରି' ଆକାଶେ' ରହିଣ' ସୁବଳ' ଗିରିକି' ଚାହିଁଲା' **3।** ଡ଼ୋଳେ' ଦେଖିଲା' **4।** ଦୁର୍ବାଦ'ଳ ରାମ' ଶରୀର' **5।** ସଂସାର' ଶୋଭାକି' ଘେନି ଅ'ବତାର' ମଦନ' ଯାର ପା'ରିଚାର'। ବିଶ୍ବନାଥ ବିଚିତ୍ର ରାମାଯଣ।

**31।** ବସନ୍ତ—ଏହାର ପ୍ରତ୍ୟେକ ପଦରେ ଛଅଗୋଟି ପାଦ ଥାଏ। ପ୍ରତ୍ୟେକ ପାଦରେ **14** ଗୋଟି ଲେଖାଏଁ ଅକ୍ଷର ଥାଏ। ପ୍ରଥମ ପାଦର ଶେଷ ଅକ୍ଷର ସହିତ ଦ୍ବିତୀଯ ପାଦର ଶେଷ ଅକ୍ଷର, ତୃତୀଯ ପାଦର ଶେଷ ଅକ୍ଷର ସହିତ ଚତୁର୍ଥ ପାଦର ଶେଷ ଅକ୍ଷର, ପଞ୍ଚମ ପାଦର ଶେଷ ଅକ୍ଷର ସହିତ ଷଷ୍ଠ ପାଦର ଶେଷ ଅକ୍ଷରର ଯତିପାତ ହୁଏ। ଆହୁରି ମଧ୍ଯ ପ୍ରତ୍ୟେକ ପାଦର ଅଷ୍ଟମ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ। ଯଥା—ହର ଧନୁ ଭଗ ରାମ' ରାମନେତ୍ରୀ ବିଭା' ଲେଖିଲେ ଚାତୁରୀ ଆଳୀ' ଆଳି କରି ଶୋଭା', ଭାଗୁରାମ ରାମବାଦ' ବିଥୀରେ ଯେମନ୍ତ', ବୋଧେ ରଘୁବର ବର'—ବରଣୀର ଚିତ୍ତ' ମଧୁଶଯ୍ୟା ଶଯ୍ୟାଶୋଭା' କୁଳ ଦୀପ ଛୁଇଁ' ରାମ ସୀତା ଚିତ୍ର ଚିତ୍ର' ବିଧାନେ ଚିତ୍ରାଇ'। ଗୋଲୋକ ଇନ୍ଦୁ ରେଖା।

**32।** କନଡ଼ା—ଏହାର ପ୍ରତ୍ୟେକ ପଦରେ ସାତ ପଦ ଥାଏ। ଏହାର ପାଦମାନଙ୍କର ଯତିପାତ ଓ ପାଦମାନ ପ୍ରତ୍ୟେକ କେତେ ଅକ୍ଷର, ତାହା ନିମ୍ନରେ ପ୍ରଦତ୍ତ ହେଲା। ପ୍ରଥମ, ଦ୍ବିତୀଯ ଓ ତୃତୀଯ ପାଦର ଶେଷ ଅକ୍ଷର ଏକ। ପଞ୍ଚମ, ଷଷ୍ଠ ଓ ସପ୍ତମ ପାଦରର ଶେଷ ଅକ୍ଷର ଏକ। ପ୍ରଥମ— **6+6+9 = 21** ତୃତୀଯ — **6+6+8+1 = 21** ଦ୍ବିତୀଯ, ପଞ୍ଚମ ଓ ଷଷ୍ଠ — **2+9 = 11** ଚତୁର୍ଥ—**3 = 3** ସପ୍ତମ — ଓ**6+6+3+5+1 = 21** ଯଥା—**1।** କୁମାର ବିଳାସ' ନବଛାନ୍ଦେ

ରସ' ସୁଧୀର ଧୀର କରି ଚିତ୍ତ'**।** **2।** କରି' କରିଗତ ନିଶି ଆଗତ' **3।** କଣ୍ଠେ ନାଇ ତାରା' ମଦନ ବିଭୋରା' ମୋହିଲା ରଙ୍ଗେ ଜଗତ'ସେ'**।** **4।** କାମିନୀ'**।** **5।** କଳା'କର ମଥାମଣି ମଥାରେ' **6।** କହେ' ରଙ୍ଗେ ତରୁଣ ଦମ୍ପତିରେ'**।** **7।** କରନାଁ ବିଳମ୍ବ' କର ସଙ୍ଗରଙ୍ଗ' ବିନୋଦେ' ମନମଥରେ' ଗୋ'**।** ଗୋଲୋକ ଇନ୍ଦୁ ରେଖା**।**

**33।** ଧନାଶ୍ରୀ—ଏହାର ପ୍ରତ୍ୟେକ ପଦରେ ପାଞ୍ଚ ପାଦ ଥାଏ**।** ପ୍ରଥମ ପାଦରେ କୋଡ଼ିଏ ଅକ୍ଷର, ଦ୍ବିତୀୟ ପାଦରେ **2** ଅକ୍ଷର; ତୃତୀୟ ପାଦରେ ହେ, ରେ ବା ଗୋ ସହିତ ଆଉ ଦୁଇଟି ଅକ୍ଷର; ଚତୁର୍ଥ ଓ ପଞ୍ଚମ ପାଦରେ ଦଶଗୋଟି ଲେଖାଏଁ ଅକ୍ଷର ଥାଏ**।** ପାଦମାନଙ୍କର ଶେଷ ଅକ୍ଷର ଉପରେ ଯତିପାତ ହୁଏ**।** **1।** ତରତର ହୋଇ ସଜନୀଏ ଲୋଡ଼ୁ ଧୀରମଣିଙ୍କ ଉତ୍ତର ' **2।** ତରଳ ନୟନୀ ସମବେଦନାରୁ ଏତିକି ମାତର ତର' **3।** ହେ ଧୀର' **4।** ତରଷ୍ଣ ନୁହ କଥା ଭିତର' **5।** ତରଳିଛ ଜାଣୁ ବୃହତ୍ତର'**।** ଗୋଲୋକ ଇନ୍ଦୁ ରେଖା **।**

**34।** ଚିନ୍ତାକାମୋଦୀ—ଏହାର ଚାରି ପାଦରେ ଗୋଟିଏ ପଦ ହୁଏ**।** ପ୍ରଥମ ଓ ଦ୍ବିତୀୟ ପାଦରେ କୋଡ଼ିଏ ଗୋଟି ଲେଖାଏଁ ଅକ୍ଷର ଥାଏ**।** ତୃତୀୟ ପାଦରେ ସାତ— ଗୋଟି ଓ ଚତୁର୍ଥ ପାଦରେ ଦଶଗୋଟି ଅକ୍ଷର ଥାଏ**।** ପାଦମାନଙ୍କରେ ଶେଷ ଯତିପାତ ହୁଏ**।** ପ୍ରଥମ ଓ ଦ୍ବିତୀୟ ପାଦର ଚତୁର୍ଥ ଓ ଦ୍ବାଦଶ ଅକ୍ଷର ଉପରେ, ତୃତୀୟ ଓ ଚତୁର୍ଥ ପାଦର ଦ୍ବିତୀୟ ଅକ୍ଷର ଉପରେ ଅଧିକା ଯତି ପଡ଼େ**।** ଯଥା—**1।** ତିକେ ସମ' ତାକୁ ହୁଅନ୍ତା ସୀତାଂଶୁ ନ ଥିଲେ ନାନା ମୂରତି' **2।** ତୀବ୍ର ଚିନ୍ତା' ମନେ ଜାତ ଭାବି ହୟ'— ଗ୍ରୀବ ଅପସରା ପତି' **3।** ତିମି'ରେ ବୁଡ଼େ ମତି' **4।.** ତିରି'ଦଶ ପତି ନେତ୍ର ଅତି' ଗୋଲେକ ଇନ୍ଦୁରେଖା**।]**

**[ 36)** ରାଗ ମାଳା **Rāga māḻā**

ରାଗ ମାଳା— **Rāga māḻā** ସଂ. ବି— କୌଣସି ବିଷୟକୁ ଏକାଧିକ ରାଗରେ ଆବଦ୍ଧ କରି ପର୍ଯ୍ୟାୟକ୍ରମେ ତାଳୟୋଗରେ ଗାନ କରିବା— **A sort of singing in which more than one tune of music is sung to different measures.**

**37)** ରାଗୟୁକ୍ତ **Rāgajuk**

ରାଗଯୁକ୍ତ— **Rāgajuk** ସଂ. ବି (ରାଗ+ଯୁଜ୍ ଧାତୁ+କର୍ମ ତ)— ମାଣିକ୍ଯ— **Ruby.**

**66)** ରାଗିଣୀ **Rāginī**

ରାଗିଣୀ— **Rāginī** ସଂ. ବି. ସ୍ତ୍ରୀ (ରାଗ+ସ୍ତ୍ରୀ.ଇନ୍+ଈ;ରାଗମାନଙ୍କର ଭାର୍ଯ୍ୟା)— ସଙ୍ଗୀତର ପ୍ରଧାନ **6** ଗୋଟି ରାଗର ପରିବର୍ତ୍ତନ ବା ମିଶ୍ରଣାଦି ଜନିତ ମିଶ୍ରସ୍ବର—**Secondary tunes in music.** [ଦ୍ର—ରାଗତଳେ ନୋଟ୍ ଦେଖ। ପ୍ରତ୍ଯେକ ରାଗର **6** ଗୋଟି ରାଗିଣୀ ଅଛି। ଭିନ୍ନ ଭିନ୍ନ ଋଷିଙ୍କ ମତରେ ରାଗିଣୀମାନେ ମଧ୍ଯ ଭିନ୍ନ ଭିନ୍ନ। ଏକ ମୁନି ଯେଉଁ ରାଗିଣୀକୁ ଏକ ରାଗର ଭାର୍ଯ୍ୟା ବୋଲି କହି ଯାଇ ଅଛନ୍ତି, ଅନ୍ୟ ମୂନି ତାକୁ ଅନ୍ୟ ଏକ ରାଗର ଭାର୍ଯ୍ୟା ବୋଲି କହିଯାଇ ଅଛନ୍ତି। ଫଳତଃ ବହୁଶତ ରାଗରାଗିଣୀ ରଚିତ ହୋଇଅଛି ଓ ସାଧାରଣ ବ୍ୟବହାରରେ ରାଗ ଓ ରାଗିଣୀର ପ୍ରଭେଦ ରଖାୟାଏ ନାହିଁ।] **2।** ସ୍ବାମୀଙ୍କ ପ୍ରତି ଅନୁରକ୍ତା ବା ବିଦଗ୍ଧା ସ୍ତ୍ରୀ—**2. A woman very much attached to her husband. 3।** ମେନକା ଅପ୍ସରାଙ୍କ ଜ୍ଯେଷ୍ଠାକନ୍ୟା—**3. The eldest daughter of Nymph Menakā.**

**67)** ରାଗିବା **Rāgibā (p. 7049)**

ରାଗିବା— **Rāgibā** (ରଗାଇବା—ପ୍ରଯୋଜକରୂପ) **[synonym(s): ब्रागा रागहोना]** ଦେ. କ୍ରି (ସଂ. ରଞ୍ଜ୍ ଧାତୁ)— **1।** ରାଗହେବା; କ୍ରୋଧାନ୍ବିତ ହେବା;ରାଗିବା କ୍ରୁଦ୍ଧ ହେବା— **1. To be angry. 2।** ବିରକ୍ତ ହେବା—**2. To be displeased.**

**68)** ରାଗି ମାଗି **Rāgi māgi (p. 7049)**

ରାଗି ମାଗି— **Rāgi māgi [synonym(s): ब्रेगेमेगे रागीरंजी होकर]** ଦେ. କ୍ରି. ବିଣ (ନିରର୍ଥକ ସହଚର)— ଅତ୍ଯନ୍ତ କ୍ରୋଧାନ୍ବିତ ହୋଇ—**Angrily.**

**69)** ରାଗୀ **Rāgī (p. 7049)**

ରାଗୀ— **Rāgī** (ରାଗିଣୀ—ସ୍ତ୍ରୀ) ସଂ. ବିଣ. ପୁଂ (ରାଗ+ଅଛି ଅର୍ଥରେ; ଇନ୍1ମା1ବ)— **1।** ରାଗଯୁକ୍ତ; ଅନୁରକ୍ତ—**1. Attached to; fond of. 2।** କାମୁକ—**2.**

**Lascivious. 3।** ରଞ୍ଜନକାରୀ—**3. Colouring; dyeing.** ବି (ବୈଦ୍ୟକ)—ଏକପ୍ରକାର ତୃଣଧାନ୍ଯ; ମାଣ୍ଡିଆ— **A sort of grain.**

**70)** ରାଗୁଆ **Rāguā (p. 7049)**

ରାଗୁଆ— **Rāguā** [ରାଗେ(ଗୋ)ଇ—ସ୍ତ୍ରୀ] **[synonym(s):** ଝ୍ରାଗୀ ଝାଲ **ରାଗିତ୍ମା]** ଦେ. ବିଣ. ପୁଂ— **1।** କୋପନ ସ୍ବଭାବ— **1. Of an angry temper. 2।** କଟୁସ୍ବାଦଯୁକ୍ତ—**2. Pungent.**

**Back to the Search Page | Back to the DDSA Page**

ତାଳ

ତାଳ— **Tāḻa** ସଂ. ବି. (ତଲ୍ ଧାତୁ = ପ୍ରତିଷ୍ଠିତ ହେବା; ଉନ୍ନତ ହେବା+କରଣ ଅ; ଯହିଁରେ ଗୀତବାଦ୍ଯ ଓ ନୃତ୍ଯ ପ୍ରତିଷ୍ଠିତ ହୁଏ; ମତାନ୍ତରରେ ହରଙ୍କ ନୃତ୍ଯ, 'ତାଣ୍ଡବ'ର ଆଦ୍ଯ ଅକ୍ଷର 'ତା' ଓ ଗୌରୀଙ୍କ ନୃତ୍ଯ 'ଲାସ୍ଯ'ର ଆଦ୍ଯ 'ଳ' ଏହି ଅକ୍ଷରଦ୍ବୟର ମିଶ୍ରଣରେ ଏ ଶବ୍ଦ ଗଠିତ)— **1।** ଗୀତ, ବାଦ୍ଯ ଓ ନୃତ୍ଯ ବିଷୟରେ କାଳକ୍ରିୟାର ପିରମାଣ ବିଶେଷ; ଗୀତବାଦ୍ଯର ବିଶ୍ରାମ ସ୍ଥଳ; ସଙ୍ଗୀତର ତାଳ— କ୍ରିୟାମାନ—**1. Time or measure in music and dancing; beating of time to music.** [ଦ୍ର—ଗାନ ଓ ବାଦ୍ଯରେ ଯେଉଁ ଯେଉଁଠାରେ ଜୋର୍ ପଡ଼େ ତାହାକୁ ତାଳ ବୋଲାୟାଏ। ସଂସ୍କୃତ ସଂଗୀତ ଗ୍ରନ୍ଥରେ ତାଳ **2** ପ୍ରକାର; ଯଥା—ମାର୍ଗ ଓ ଦେଶୀ। ଭରତ ମୁନିଙ୍କ ମତରେ ମାର୍ଗର ସଂଖ୍ଯା **6** ଓ ଦେଶୀଯ ସଂଖ୍ଯା **12।** ଗୀତ ବୋଲା ହେବାବେଳେ ତାଳ ଦେବାପାଇଁ ତାଳି, ଗିନୀ, ମୃଦଙ୍ଗ, ଢୋଲ ମନ୍ଦିରା, ତବଲାଆଦି ବ୍ୟବହୃତ ହୁଏ। ଗୀତବାଦ୍ଯ ଓ ନୃତ୍ଯର ନାମ ସଙ୍ଗୀତ; ସଙ୍ଗୀତରେ ଛାନ୍ଦ ପ୍ରକାଶ କରିବା ପାଇଁ କାଳ ପରିମାଣର ପ୍ରୟୋଜନ, କାଳ ପରିମାଣ କରିବା ପାଇଁ ତାଳର ପ୍ରୟୋଜନ। କରତାଳି ବା କିଛି କିଛି ସମୟ ବ୍ୟବଧାନରେ କାରୟିବା ଆଘାତ— ଦ୍ବାରା କାଳ ଜ୍ଞାପିତ ହୁଏ; ଏହି ଆଘାତ କରିବାର ନାମ ତାଳ ଦେବା। ଗାନରେ ପଦ ଥାଏ। କାଳ ପରିମାଣ ବ୍ଯତୀତ ପଦ ହୁଏ ନାହିଁ। ଯେଉଁ ପରିମିତ କାଳକୁ ଏକକ ରୂପେ ଧରାୟାଏ ତାହା ମାତ୍ରା। ମାତ୍ରାମାନଙ୍କ ସମଷ୍ଟି ପଦ,

ଅଥବା ପଦର ଗୁରୁ ଲଘୁ ଉଚ୍ଚାରଣକାଳର ନାମ ମାତ୍ରା। ପୁନଃ ପୁନଃ ଏକ ନିଯମରେ **[synonym(s): তাল তাড়, তাতাল** ସଂ. ନାମ, ତାଳଦ୍ରୁମ, ତୃଣ ରାଜ, ଧ୍ୱଜଦ୍ରୁମ, ଦୀର୍ଘସ୍କନ୍ଧ, ଦୀର୍ଘପତ୍ର, ଲେଖ୍ୟପତ୍ର, ମହୋନ୍ନତ,ପତ୍ରୀ, ମଧୁରସ, ଗୁଚ୍ଛପତ୍ର, ମଦାଢ୍ୟ, ଦୀର୍ଘ ପାଦପ, ଆସବଦ୍ରୁ, ତରୁ— ରାଜ, ଚିରାୟୁ, ମ, ଓ ଗୁ. ତାଡ଼ ତା. ପନନ ଫା. ତାଲ ଆ. ତାର] ଗୁରୁ ଲଘୁ ଉଚ୍ଚାରଣ ବିଶିଷ୍ଟ ପଦର ନାମ ଛନ୍ଦ। ଗାନର ଛନ୍ଦର ଯେଉଁ ପଦରେ ପ୍ରସନ୍ନ ବା କଳନ୍ନ୍ୟାସ କରିବାକୁ ହୁଏ, ଆଘାତ ଦ୍ବାରା ତାହା ପ୍ରଦର୍ଶନ କରିବା ହିଁ ତାଳ ଦେବାର ଉଦ୍ଦେଶ୍ୟ। ଅଧିକ ବଳ ସହିତ ଉଚ୍ଚାରଣ ସ୍ଥାନର ନାମ ସମ; ତାଳର ଶେଷ ବା ଅବକାଶ ସ୍ଥାନର ନାମ ଫାଙ୍କ। ପ୍ରଚଳିତ ତାଳରେ**4** ପଦ ଥାଏ। ତିନି ପଦରେ ତାଳି ବା ଆଘାତ ଦିଆଯାଏ, ଶେଷ ପଦରେ ଅନାଘାତ ବା ଫାଙ୍କ ଦିଆଯାଏ। ଦ୍ବିତୀଯ ତାଳି—ସମ; ତାଳରେ ଯେଉଁ ସ୍ଥାନରେ ଆଘାତ ଦେବାର ନିଯମ ଛନ୍ଦର ସେ ସ୍ଥାନରେ ପ୍ରସନ୍ନ ନ ଥିଲେ ଆଡ଼ (ସଂ. ଆରାଳ); ଯେଉଁ ତାଳର ପ୍ରତ୍ୟେକ ପଦକୁ **4** ସମାନ ଅଂଶରେ ବିଭାଗ କରାଯାଇ ପାରେ ତାହା ଚତୁର୍ମାତ୍ରିକ ତାଳ (ଯଥା—କାବାଲୀ) ଯେଉଁ ତାଳର ପ୍ରତ୍ୟେକ ପଦକୁ **3** ସମାନ ଅଂଶରେ ଭାଗ କରାଯାଇପାରେ ତାହା ତ୍ରୈମାର୍ତିକ ତାଳ(ଯଥା—ଏକତାଳି)। ଯେଉଁ ତାଳର ପଦରେ ମାତ୍ରା ସଂଖ୍ୟା ଅସମାନ ତାହା ବିଷମମାତ୍ରିକ (ଯଥା—ୟତ୍); ଯୋଗେଶ୍ଚନ୍ଦ୍ରଙ୍କ ଉଦ୍ଧୃତ କୃଷ୍ଣଧନ ବନ୍ଦୋପାଧ୍ୟାୟ।]

ଇତି କାବ୍ୟରେ ରାଗ

ଲେଖା ସଂଗ୍ରାହକ: ଲଲାଟେନ୍ଦୁ କବି

========================================

========================================

================SOURCE:==================

==============ପୂର୍ଣ୍ଣଚନ୍ଦ୍ର ଭାଷାକୋଷ ================

========================================

========================================